ପୁସ୍ତକର ବଳକ୍ଷ ଉପରେ ପ୍ରକାଶକଙ୍କ ସ୍ୱାକ୍ଷର ନଥିଲେ
ପୁସ୍ତକ ଅପ୍ରକୃତ ବୋଲି ଜାଣିବେ ।

ଭଜଗୋବିନ୍ଦ

# ଭକ୍ତବନ୍ଧୁ ସଂକୀର୍ତ୍ତନ

---

ଶ୍ରୀ ମହାଦେବ ପାଲ ଶର୍ମ୍ମା ଦ୍ୱାରା
ପ୍ରଣୀତ ଓ ପ୍ରକାଶିତ
ପ୍ରଥମ ସଂସ୍କରଣ

ପ୍ରାପ୍ତିସ୍ଥାନ—ମହାଦେବ ପାଲ ଶର୍ମ୍ମା
ଗ୍ରା. ଚାନ୍ଦପୁର
ପୋ:—ଉଲୁବୋଡ଼ି



ମୁଦ୍ରାକର—ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶାରଦା ପ୍ରେସ୍
ବ୍ରହ୍ମପୁର (ଗଞ୍ଜାମ) ୧୯୩୬

ମୂଲ୍ୟ ୬ ୦ ୯ ଦୁଇ ଅଣା ।

ଭଜ ଗୋବିନ୍ଦ

# ଭକ୍ତବନ୍ଧୁ ସଂକୀର୍ତ୍ତନ



ଦିନେ କୃଷ୍ଣଚନ୍ଦ୍ର, ଦଧି କ୍ଷୀର ସବୁ ଖାଇ ।
ସେ ଭାଣ୍ଡ ଗଡ଼ାଇ ଭାଙ୍ଗି, ଶୋଇଛନ୍ତି ଯାଇ ।
ଡର ଚିତ୍ତରେ ନ ଥାଇ
ଧୀରେ ଶୋଇଛନ୍ତି କାହ୍ନୁ ବାଙ୍କେ ଗୃହେଁ । ୧ ।
ଗୃହକାର୍ଯ୍ୟ କରୁଥିଲେ, ଯଶୋବନ୍ତି ରାଣୀ
ପୁତ୍ରଙ୍କୁ ଡାକନ୍ତି ବାପ ଆହେ ନୀଳମଣି ।
ମାତା କୋଳରେ ଯଇଲେ
କେତେ ଗୃଠ ବାକ୍ୟ କହି ଲୁଗ୍ୟଲେ । ୨ ।
ଭଣ୍ଡ ଖାଣ୍ଡି ଦେଖି ରାଣୀ, ବୋଲନ୍ତି ଶ୍ରୀଧର ।
ଏତେ ଦଧି କ୍ଷୀର ମୋର, କଲୁ ନାଶଖାଇ ।
ଅଜ ଯିବୁ ରେ ତୁ କାହିଁ
ମୋତେ ଛକେ ହେଲେ ତୋର ଡର ନାହିଁ । ୩ ।
ନିତି ନିତି ଏହିପରି, କରୁଥାଉ ମୋତେ ।
ତାର ପ୍ରତିଫଳ ଆଜ, ଦେବି ଭଲ ତୋତେ ।
ଆଜା ଘଣ୍ଟକୁ ଭୁଲିବେ
ମନେ ରହିଯିବ ଏହି ଥରକରେ । ୪ ।
ନନ୍ଦ ଖାଉଛୁ ତୁ ଯାହା, ଯାଣିଛୁ ତୋ ପାଟି ।
କେମନ୍ତ ମଧୁର ଅଛି, ଯାଣିବ ତୋ ପିଠି ।
ଛାଟ କହିବରେ ରହ
ତାକୁ ବୁଝାଇ କହିବୁ ପୁନା ପୁଅ । ୫ ।

ବଞ୍ଚିତ ଦନର ଦଧିହାଣ୍ଡି ଥିଲା ମୋର ।
ତାହା କାଁପା ଭାଙ୍ଗିଦେଲୁ ଦୁର୍ଦ୍ଦଣ୍ଡ କୁମର ।
ଏହା ତୋ ମାତା ସହିବ
ଅଜ ବିବାଧ ମାତୃତ ଛାଡ଼ି ଦେବ ।୬
ଗୋଷ୍ଠିକ କୁମର ବୋଲି ମୁଁ ପେଟେ ଧଇଲି ।
ସେଥିକି ଘୃଣା କରୁଛି, ମନେ କସ ଭାଳି ।
ଏହା ପିତାକୁ ବୁଝାଇ
ଏବେ କହିଦେବି ତାଙ୍କ ଆଗେ ଯାଇ ।୭ ।
ମାତାଠୁ ଏବାଣି ଶୁଣି ଡର ଡର ହୋଇ ।
ପଛରୁ ବାହାର ଦାଣ୍ଡେ ଧାଇଁଲେ କହାଇ ।
ମାତା କ୍ରୋଧରେ ଛାଟିଲୁ
ଧରି ଧାଇଁ ଗଲେ ପୁତ୍ର ପିଟିବାକୁ ।୮ ।
ନିକଟେ ଥିଲା ପଲ୍ଲବ ବଶନ୍ତ କେଶବ ।
ଯାର ଅଙ୍କ ଅନ୍ତ ନାହିଁ କେ ଟଲି ପାରିବ ।
ଥକି ରହିଲେ ଜନନୀ
ଯେବେ ଗୃହୀ ଛନ୍ତି ଧରେ ବେଣୁପାଣି ।୯ ।
ବୋଲୁଛନ୍ତି ବିଧିର ଖଣ୍ଡେ ଦୂରେ ରହି ।
ମିଛକଥା ଆଜ ମାତା କହୁଛୁ କି ପାଇଁ ।
ଦଧି କେ ଜାଣି କେ ନେଲା
ମତେ ଦଣ୍ଡିବାକୁ ତୁମ୍ଭ ମନେ ଥିଲା ।୧୦ ।
ନଦେ ଶୋଇଥିଲି ମୁଁ ତ କିଛି ଜାଣିନାହିଁ ।
ମିଞ୍ଜାର ସିଙ୍କାରେ ଚଢ଼ି ଖାଇଥିବ ଯାଇ ।
ହିକା ଛିଣ୍ଡାଇ ସେ ଥିବ
ହାଣ୍ଡି ତଳ ପଡ଼ି ଭାଙ୍ଗି ଯାଇଥିବ ।୧୧ ।
ମୋତେ ଏତେ ଦୂଷଣ ନଦିଅଗୋ ମାତ ।

ଦୋଷ କ୍ଷମ କରନାହିଁ ମୁଁ ଯାତ୍ରୀମାତ୍ରରତ ।
ମୋତେ ମାଗନା ମାଗଣୀ
ଦ୍ୱିଜ ମହାଦେବଙ୍କ ଫୁଲଙ୍କ ରଚନା । ୧୬ ।



ମଦନ ମୋହନ ମୁରଲୀଧାରୀ ।
ମାଧବ ମୁକୁନ୍ଦ ମୁର ଅରର ।
ସେହି ପ୍ରଭୁ ପାଦ ଭଜରେ ମନ ।
ଅନ୍ତ୍ୟଙ୍କୁ ଏଜୀବ ହେବ କାରଣ ।
ଭକ୍ତେ ସର୍ବେ ବହୁ କରନ୍ତେ ଧ୍ୟାନ ।
ସଞ୍ଚିତ ପାପ ହେବ ଦହନ ।
ନନ୍ଦରାଣୀ କୋଳନ୍ତୁ ମୋ କେତେ ବର୍ଣ୍ଣିବ ।
ଓଦଣ୍ଡ ହୋଇଲା ମୋର ଏକଇ ନନ୍ଦନ ।
(କେତେ) ବୁଝାଇ କହିଲେ
(ହେବେ) ନ ବୁଝଇ କଥା ଛଟଳ ହେଲେ । ୧ ।
ଅଳକ ବାଳକ ଅଛନ୍ତି ଏବ୍ରଜପୁରେ ।
ଏହାପରି କାହାକୁ ମୁ ନ ଦେଖେ ନେତ୍ରରେ ।
ମୋର କର୍ମକୁ ଗ୍ରହିଣ
ଫଳ ଫଳତ ଅଛି ତା କେ କରେ ଅନ । ୨ ।
ବୃଦ୍ଧକାଳେ ଧାତା ଦେଲେ ଏକଇ ନନ୍ଦନ ।
ତାର ଚିନ୍ତା କରିବାକୁ ହେଲା ନିବେଦନ ।
(ଯହିଁ) ଚଲ ଦଣ୍ଡ ଦଣ୍ଡା
(କେତେ) ଶୁଣାଇଁ ଅଛି ଏ ଠୋକା ବେଣ୍ଟା । ୩ ।
ଜନ୍ମ କର ଅଛିବୋଲି ଏହାର ଅର୍ଜନ ।

ସହୁଛି ଭବ ଜାଳରେ ଅଷ୍ଟ ମୋସଂଶୋଳ ।
(ଶ୍ରୀନ) ମହାଦେବ କହୁ
(ରାଧା) ରମଣଙ୍କ ପାଦପଦ୍ମ ଧ୍ୟାଇ । ୪ ।



ବଟଶ୍ରୀ ନାଗର କାହ୍ନୁ ଗୋପୀ ଦ୍ୱାରେ ଯାଇ ।
ଅନାଇ ଛନ୍ତି ଗୃହକୁ କେ ଅଛୁ କି ନାହିଁ ।
(ଗୋପୀ) ନାହାନ୍ତି କେ ଘରେ
ସର୍ବେ ଯାଇଛନ୍ତି ଜଳ ଆଣି ବାରେ । ୧ ।
ଗୃହେ ପଶି ଦଧି ଦୁଗ୍ଧ ସବୁ ଖାଇ ଦେଇ ।
ଦାଣ୍ଡ ଦ୍ୱାରେ ଗୃହସ୍ଥ ଛନ୍ତି ବଟିଥା କହାଇ ।
(ଗୋପୀ) ଅସିବା ଦେଖିଣ ।
କୃଷ୍ଣ ନନ୍ଦଙ୍କ ଲେଉଟିଗ ଛନ ଛନ । ୨ ।
ଯେଉଁ ଗୃହେ ବ୍ରଜବାଳୀ ଯାଇ ପ୍ରବେଶିଲେ ।
ଦଧି କ୍ଷୀର କିଛୁ ନାହିଁ ନେତ୍ରରେ ଦେଖିଲେ ।
(ମନେ) କରନ୍ତି ବିଚାର
କାହ୍ନୁ ଏକା ସିନା ଏହି ବ୍ରଜେ ଚୋର । ୩ ।
ପ୍ରତିଦିନ ଏହିପରି ଖାଇଦେଲା ସେହି ।
କହିବା ଏହାର ବାଦ କାହାଆଗେ ଯାଇ ।
ଅମ୍ଭ ଦୁଃଖ କେ ଯାଣିବ ।
ପ୍ରଭୁ ସାହାଦେବେ କହେ ମହାଦେବ । ୪



## ଜଳକେଳି

କରନ୍ତି ସର୍ବ ବ୍ରଜବାଳୀ ହୋ ଜଳକେଳୀ । ପଦ ।
କାଢ଼ୀ ଅଙ୍ଗରୁ ବସନ, ଯମୁନାତଟେ ରଖିଣ ।
ଧ୍ୟାନକଲେ ଷୋଡଶ ବାଳୀହେ । ୧ ।

ସେ ଘନଶ୍ୟାମ ସୁନ୍ଦର, ଜାଣିଲେ ଏ ପ୍ରକାର
ତହିଁ ପ୍ରବେଶ ବନମାଳୀ ହେ । ୨ ।
କଦମ୍ବ ବୃକ୍ଷେ ଚଢ଼ିଲେ, ପବନକୁ ଆଜ୍ଞା ଦେଲେ ।
ଯାଅ ଯମୁନା କୂଳେ ଚଞ୍ଚଳହେ । ୩ ।
ଗୋପିଏ ରଖି ବସନ, କରନ୍ତି ସେ ଜଳେ ସ୍ନାନ
ତାହା ଘେନିଣ ଆସ ଶୀଘ୍ରହେ । ୪ ।
ସକଳେ ସ୍ନାନ ସାରିଣ, ଦେଖନ୍ତି ନାହିଁ ବସନ
ଚାହାଁନ୍ତି କେହୁ ନେଲା ବୋଲି ହେ । ୫ ।
କି ଯୋଗେ ଆଜ ଅମ୍ଭେ ଘରୁ ହେଲୁ ବାହାର ।
ପାଳଟା ବସ୍ତ୍ର କେହୁ ଆସି ନେଲା ଅମ୍ବର ।
ଏବେ କେଉଁ ଉପାୟ ଅମ୍ଭେ କରିବା କହ ।
ଘରେ କ'ଣ ପୁଛନ୍ତି ଦେଖି ଅମ୍ଭମାନଙ୍କ ଦେହ ।
ଉଲଗ୍ନ ହୋଇ ଜଳେ କେମନ୍ତେ ଯେ ରହିବା ।
ଏଥକୁ ଅମ୍ଭେମାନେ କି ଉପାୟ କରିବା ।
ଏକକୁ ଅନେ ଚାହିଁ କହୁଅନ୍ତି କୁହାକୁହି ।
କେତେବେଳ ଏଠାରେ ରହିବା ବନ୍ଦ ହୋଇ ।
ଧିକ ଏ ଯଉବନ ଧିକ ଅମ୍ଭ ଜୀବନ ।
ହାୟ ବିଧାତା କିପାଁ ନ ନେଉ ଅମ୍ଭ ପ୍ରାଣ ।
ଗୋପିଙ୍କର ଆରତ ଜାଣିଲେ ସର୍ବାଧାରୀ ।
କଦମ୍ବ ବୃକ୍ଷେ ରହି ବଜାଇଲେ ବଂଶୀର ।
ତାର ଅପୂର୍ବ ଧ୍ୱନି ଶୁଣି ବ୍ରଜ କାମିନୀ ।
ସମ୍ମୁଖରେ ଚାହିଁଦେଲେ ଦେଖନ୍ତି ବେଣୁପାଣି ।
ହାନ୍ଦ୍ଳାରେ ଖେଳନ୍ତି ଧୀରେ ବଂଶୀ ବଜାଇ ।
ମହାଦେବ କହଇ ସେ ପାଦେ ଚିତ୍ତ ଦେଇ ।

— —୦— —

ଏବସ୍ତ୍ରା କିମ୍ପା ନେଲୁ ଅଣିରେ । ବେଣୁପାଣି । ପଦ ।

କି ଦୋଷ କରିଥିଲୁ, ଏବସ୍ତ୍ର ଆଣି ଦେଲୁ
ଗଛେଣ କାହ୍ନୁ ଅଛୁ ତରୁଶୀରେ । ୧ ।
ଛୁଟି ନାହିଁକ ହସ, ବସ୍ତ୍ର କରଲୁ ଚୋର
ନାଶି ପାଣିଗ୍ରା ନନ୍ଦସୁତ ହେ । ୨ ।
ବାନ୍ଧିଣ ପଡ଼ୁଛୁ ଧାଇ, ଲୁଚେ ବୁଲୁରେ ଗୁହ
ମଧ୍ୟେ ଦୋହେ ଜଣା ନାହିଁ ରେ । ୩ ।
ଆମ୍ଭେ ବ୍ରଜ ଯୁବତୀ, ସ୍ୱକୁଳ ବଧୂ ସତୀ
ଯେନ ଧାନ ଦାସୀ କନଛ ହେ । ୪ ।
ମାତା ଅଗେ କହିବୁ, ଛାନ୍ଦରେ ପିଟାଇବ
ଯେବେ ଅମ୍ଭ ବସ୍ତ୍ର ନ ଦେବୁ ହେ । ୫ ।
କହନ୍ତି ଶ୍ୟାମ ଧନ, ତୁମ୍ଭ ବସ୍ତ୍ର ପବନ
ଯାଇ ଥିଲେ ଘରେ ଦେଖଣ । ୬ ।

ଛଡ଼ାଇଲା

ଏବୁଝେ ଯଉନେ ଉଣିକଥା

ଯେନ ଯାଉଥିଲା ତୁମ୍ଭ ବସନ ପବନ ।
ଛଡ଼ାଇ ଆଣି ରଖିଛୁ ଏ ଡ଼ାଳେ ବାନ୍ଧି ।
ଯେତ୍ଥା ବସ୍ତ୍ର ନିଅ ଚଳି ବେଗ ହୋଇ ଅସ ।
ଅକାରଣେ ତପା ମୋତେ ଦେଉ ଅଛ ଦୋଷ ।
ତୁମ୍ଭ ପାଲଟା ବସନ ଛଡ଼ାଇ ରଖିଲି ।
ନନା ଅପବାଦ ପୁଣି ଏବେ ମୁଁ ଶୁଣିଲି ।
କାଳେ ଅର୍ଜିଥିବା କର୍ମ ଫଳ ମୁଁ ଭୁଞ୍ଜିଲି ।
ତତ୍ତ୍ୱେ ଦାସ୍ୟା ବହୁ ଯେ ତୁ ତୁମ୍ଭ ବସ୍ତ୍ର ନେଲ ।

ମହାଦେବ ପାଲ



ଶ୍ରୀକୃଷ୍ଣଙ୍କ ବାଣି, ଶୁଣି ନାରୀମଣି
ମନେ ଅନନ୍ଦ ହୋଇଲେ ।
ଏହି ଅବସ୍ଥାରେ ଥିବାକ ଜଳରେ
କ୍ଷୁଧା କ୍ଷୁଦ୍ର ସବେ ହେଲେ । ୧ ।
ଏକଲା ତଥାର, ସ୍ୱାମୀ ନିକଟ ନାହିଁ
ବସନ ରଖିଛନ୍ତି ଡାଳେ ।
ନିଜକର ଯେବେ, ନଛିବାକ ଏବେ
ରହିକ ପାରିବା ହେଲେ । ୨ ।
ଗୃହ ଗୃହ ଯିବା, ବସନ ଅଣିବା
ନିଜ ରଖିଲେ ନ ଚଳେ ।
ମଥା ଯୋଡ଼ି ଯିବା, ଭୟ ନ ରଖିବା
ପଢ଼ିବା ଭା ସ୍ୱାଦ ତଳେ । ୩ ।
ବେନି ହସ୍ତ ନେଇ, ମର୍ମ ସ୍ଥାନେ ଦେଇ
ଗୋପବାଳୀ ଚଳିଗଲେ ।
ଲଜ ଲଜ ହୋଇ, ପକ୍ଷ ଗୋପଗୋଷ୍ଠ
ବସନ ଦିଅ ବୋଇଲେ । ୪ ।
ମହାଦେବ ପାଲ



ଯାଥିରେ ବୋଲନ୍ତି ନନ୍ଦନନ୍ଦନ ।
ବେନିହସ୍ତ ତୋଳି ମାଗ ବସନ ॥
ଏବାଣି ଶୁଣିଣ ବ୍ରଜବାଳୀ ।
ବୋଲନ୍ତି କୃଷ୍ଣଙ୍କୁ ହେ ବନମାଳୀ ॥
ତୁମ୍ଭ ପଦ୍ମ ପାଦେ ନେଲୁ ଶରଣ ।
ଦୟା କରି ଦିଅ ଅମ୍ଭ ବସନ ॥
ମାୟା ଧରି ଦୟା ବଳ

ଗୋପୀଙ୍କ ବଚନ ଦେଲେ
ଯେଣୁ ବସ୍ତ୍ର ନଣ୍ଡି ନେଲେ
ଯେଣୁ ଲଜ୍ୟେ ଚଳିଗଲେ
ଭକ୍ତ ବତ୍ସଳ ଶ୍ରୀହରି
ଭକ୍ତଙ୍କୁ ନଥାନ୍ତି ଛାଡ଼ି
ଭବବନ୍ଧ କୋଟି ଦୂର
ଭକ୍ତ ଯାଆନ୍ତି ତରି
ଭାବେ ହରି ପାଦ ସେବିବା ।
ଭବାର୍ଣ୍ଣବ ହେଲେ ତରିବା ।
ହୃଦୟରେ ଭଜ ମନ
ନବୀନ ସୁନ୍ଦର ଶ୍ୟାମଘନ
ତାଙ୍କ ଶ୍ରୀ ପଦ୍ମରେ ଦିଅ ମନ
ଏହିରୂ ତରିବା ହରିଧ୍ୟାନ
ମହାଦେବ ପାଲ

—*0*—

କହୁଅଛି ଭଜରେ ମନ
ହରିନାମ ମହାମନ୍ତ୍ର ଭଜରେ ଧ୍ୟାନ । ପଦ ।
ଦେଖାଏହୁ ବଡ଼ ସଂସାର       ଲାଗିଅଛି ଯେ ଖେଳଘର
ଧନ ଜନ ଯଉବନ ମାୟା ସ୍ୱପନ । ୧ ।
କେ କାହାର ମାତା ପିତର       ବନ୍ଧୁ ମିତ୍ର ଦାରା ସୋଦର
ଭବାର୍ଣ୍ଣବ ତରିବାକୁ ନାମ ଭଜନା । ୨ ।
ହନୁହନ ଆୟୁଷ ତୋର       ଶେଷ ହୋଇ ଯିବ ଜୀବର
ଉଡ଼ିଯିବ ଉଡ଼ାପକ୍ଷୀ ଦେହ ଛାଡ଼ିଣ । ୩ ।
ତୁ ଯାହାକୁ ବୋଲୁଛୁ ମୋର       ସେ ଜାଣିନେ ନସ କରିବ ପର
ଘରୁ ଦେଇ ଯିବେ ନେଇ ନରଖିଣ । ୪ ।

ବ ପୁନର ଦଶେ ଶ୍ରାବଣ ଯାଇ କାଷ୍ଟେ ହୋଇବ ଘାର
ନ ଦେବେ ଯେ କେହୁ ଦିଅିବା ବର୍ଷଣ । ୫ ।
ଦେଶକୁଳ ବଧି ପ୍ରକାଶ କରିବେ ଯେ ଦଶା ଏଗାର
ପାଚୋଉଣ ଦେବେ ସବେ ଦ୍ୱାଦଶ ଦନ । ୬ ।
ବେଲୁ ଛାଡ଼ା ଭାବ ମନରେ ବନ୍ଧ ବାନ୍ଧ ଦେବ ହୁଙ୍କାର
ମହାଦେବ ପାଲ ଭଣେ ନାମ ସ୍ମରଣ । ୭ ।

——*:O:*——

ଆଜ କାହିଁ କ କାନ୍ଦ କରୁଛୁ ଅଳ ।
ଏତେ ବେଳ ଯାଏ ମୁଁ କାଖେ ଧରିଥିଲରେ
ଦୁଃଖିସଙ୍ଖାଳ । ୧ ।
ଷୀର ସର ଲବଣୀ ଖୁଆଇ ଦେଲି ।
ହଁ ସୁଲ ଭୁଲ ଶେଯେ ସୁଆଇ ଥିଲରେ
ଦୁଃଖି ସଙ୍ଖାଳ । ୨ ।
ଦଧି ମନ୍ଥିବ କେତେ ବେଳେ ମୁଁ ବୋଲି ।
ଜାଣିଲ୍ଲ ନାହିଁ ବାପ ଯେତେ କହୁଲରେ
ଦୁଃଖି ସଙ୍ଖାଳ । ୩ ।
ଉଛର ହେଉଛରେ ମୋ ଗଛାମାଳ ।
ଚିତା ଅସିଲେ ଚୋର ହୋଇବେ ରଣରେ
ଦୁଃଖି ସଙ୍ଖାଳ । ୪ ।
ପଣନ୍ତ ଧରି ଅଉ "ମାଁ, ମାଁ" ବୋଲି ।
ଅଳକ କରି ଦଣ୍ଡେ କେତେ ପିଉଲରେ
ଦୁଃଖି ସଙ୍ଖାଳ । ୫ ।
ପୁଣି କାଖେ ଧରିବ ଯିବାରେ ବୁଲି ।
କଣି ଦେବ ତୋ ପାଇଁ ସୁସ୍ୱାଦୁ କୋଳରେ
ଦୁଃଖି ସଙ୍ଖାଳ । ୬ ।

ମୁଁ ଘାନ ଦରିଦ୍ର ଭୁ ରତନ ମାଳ ।
ଯିଏ କି ବାପ ସଖା ସଙ୍ଗରେ ଖେଳ
ଦୁଃଖି ସଙ୍ଖାଳ । ୭ ।
ସୁଜାତ ସୁପଣ୍ଡିତ ସୁବୁଦ୍ଧି ବୋଲି
ଯାଣିଛୁ ଅଙ୍କ କଷ୍ଟା କରୁ ଅର୍ଦ୍ଧଳୀ ରେ
ଦୁଃଖି ସଙ୍ଖାଳ । ୮ ।
କେତେ ତପସ୍ୟା ଦୃବେ ମୁଁ କରଥିଲି ।
ଏବେ କାଳେ ବାପ ତୋଟତ ଲଭଲି ରେ
ଦୁଃଖି ସଙ୍ଖାଳ । ୯ ।
ଅବର ଲକ୍ଷ୍ଣ ମୋ ଗଳାର ମାଳ ।
କ୍ଷଣେ ମହା ଦେବ ନକର ଅଳ ରେ
ଦୁଃଖି ସଙ୍ଖାଳ । ୧୦ ।

—0—

ଭଜ ଭୁ ଶ୍ରୀ ରାଧା ଗୋବିନ୍ଦ ବୈ ମନଅଙ୍କ । ପଦ ।
ମାୟା ସଂସାର ଏହୁ, ଦେହ କାହାରୁ ନାହୁଁ
ଜୀବ ନାନାଟି ଭେଳା ବାନ୍ଧ ରେ । ୧ ।
ଭୁ ଯାଞ୍ଚୁ ବୋଲୁ ମୋର, ସ୍ନେହ କରବ ପର
ବସ୍ତ୍ରା ଜାଲେ ନୂତନ ରେ । ୨ ।
ଧନ ଜନ ଆୟୁଷ, ଭୋଗ ଯାଉଛି ଶେଷ
ବେଳ ଥାଉଣୁ ବାନ୍ଧ ବନ୍ଧ ରେ
ବେଣୁ ବାଉ ବାରଣି ଭର କହୁଛି ମନ
ପାନ କରବୁ ମକରନ୍ଦ ରେ । ୪ ।
ଲବେ ନମିଷେ ଦେଲେ, ନାମକୁ ରଟ ଥିଲେ
ଫିଟି ଯିବ ଏ ମୋହ ପାଦର୍ଦ୍ଦେ । ୫ ।

ସୃଷ୍ଟିର ମହାଦେବ, ନଯାଣେ ସୁଭ ସୁବ
ଦୟା କରବେ ଅନ୍ଧ ଜନ ରେ । ୭ ।

———0———

ଜୟ ଶ୍ରୀ ରାଧିକେ ଜୟ ମୋହନ ।
ତବ ଶ୍ରୀ ଚରଣେ ଦଅନ୍ତୁ ସ୍ଥାନ । ୧ ।
ଏମୀ । ଅଧମ ଗଲ୍ଲ ଶରଣ ।
ନଜାଣଇ ସ୍ତୁଭ ସ୍ତବ ବନ୍ଦନ । ୨ ।
ମାୟାରେ ପଡ଼ି ମୁଁ ହାରଇ ଜ୍ଞାନ ।
ହେଳେ ନ କରଇ ନାମ ସ୍ମରଣ । ୩ ।
ଯେଉଁ ପରି ଜୀବ ସିବ ଚରଣ ।
ଏହି କୃପା କର ରାଧାରମଣ । ୪ ।
ନାମାମୃତେ ତୃପ୍ତ କର ଅପନ ।
ଜନ୍ଦେ ମହାଦେବ ଅଧମ ହୀନ । ୫ ।

———0———

ନନ୍ଦ ସୁତ ଘନ ଶ୍ୟାମ
ଭଜ ସାଧୁ ନିତ୍ୟ ନାମ ॥
ମୁଖେ ବୋଲ ରାମ କୃଷ୍ଣ ।
ଦୂରେ ପଳାଇବ ଯମ ॥
ପୂର୍ଣ୍ଣ ହେବ ମନସ୍କାମ ।
ଅନ୍ତେ ମିଳିବ ସ୍ୱର୍ଗ ଧାମ ॥
ଜୟ ପ୍ରେମ ରସ ଧାମ ॥

——୧୦——

ଜୟ ଯଦୁ ନନ୍ଦନ, ପତିତ ପାବନ
ଜଗତ ଜୀବନ ହରି ।
ମୁନି ମନ ରଞ୍ଜନ, ରାଜୀବ ଲୋଚନ

ଘନ-ଶ୍ୟାମ ବଣୀ ଧାଣ୍ଡି । ୬ ।

ତ୍ରିଭୁବନ ପାଳକ, କାରଣ ରକ୍ଷଣ
ସଙ୍କଟ ତାରଣ କାଣ୍ଡି ।
ଭକ୍ତ ହୃଦ କାଞ୍ଚନ, ଭବାର୍ଣ୍ଣବୁ ତାରଣ
ଘନ ବନ୍ଧୁ ଦଇତାରି । ୨ ।
ବ୍ରଜ ବାଳୀ ମୋହନ, ବାଉଣ ତାରଣ
ଅରତ ଭଞ୍ଜନ ହରି ।
ତବ ପଦ୍ମ ଚରଣ, ଦେଖନ୍ତୁ ଦର୍ଶନ
ହେନ ପ୍ରଭୁ ଦୟା କରି । ୩ ।
ସନ୍ଥ ଜନ ପାଳକ, ଗରବଗଞ୍ଜନ
ସର୍ବ ଘଟେ ଅନ୍ତପୁରି ।
ମହାଦେବ ଅଞ୍ଜନ, କରୁଛି ଜଣାଣ
ନାମ ମୃତେ ନଅ ତାରି । ୪ ।

—0—

ହେକ ବନ୍ଧୁ ଦଇତାରି । ଦେଖିବାରେ ଦୟା କରି ।।

ଅରେ ବାପ ଶ୍ୟାମଘନ
ସଖା ସଙ୍ଗେ ଲୁଚ ଗଲୁ କି ବନରେ
ଗୁହ୍ନି ଗୁହ୍ନି ନ ସରୁଛି ଦିନ, ମୋକୃଷ୍ଣରେ । ୧ ।
ଅନ୍ଧର ଲଉଡ଼ି ମୋର
ଦରଦ୍ର ସମ୍ପତ୍ତି ହୃଦର ହାର ରେ
ଦଶଦିଗ ଦିଶୁଛି ଅନ୍ଧାର, ମୋ କୃଷ୍ଣରେ । ୨ ।
ତୋତେ ପାସୋରିଣ ମୁହିଁ
ଏ ଜୀବନ ଧରି ନ ପାରେ ରହି ରେ
ଘଣେ ନଦେଖି ଯୁଗ ମଣଇ, ମୋକୃଷ୍ଣରେ । ୩ ।
ତୋହ ବାରୁ ମୋ ନୟନ

ସେବଥିଲ କେତେ ଦେବ ଚରଣରେ
ବୃନ୍ଦେ ଲଭଛ ମୁଁ ଭସ୍ମଦାନ, ମୋକୃଷ୍ଣରେ । ୪ ।
ତୁ ଏ ଜୀବର ଜୀବନ
ଧାଳ ଦରିଦ୍ରର ରତନ ଧନ ରେ
କେଦ୍ଦେ ଦେଖି ଶୁଝିବ ନବ ଦନ, ମୋକୃଷ୍ଣରେ । ୫ ।
କରୁଥାଉ କେତେ ଅଳ
ମା ମା କହି ଧଅ ମୋପାଇଁ ଡୋଳ ରେ
ଆଜ ପାସୋରିଲୁ କ ମାଁ ବୋଲି, ମୋକୃଷ୍ଣରେ । ୬ ।
ନିଦ୍ରାରୁ ଉଠି ପ୍ରଭାତେ
ନିତ୍ୟ ଖିରପାନ ମାଗୁ ମୋତେ ରେ
ଅଣି କେ ଦେବ ତୋତେ ବନସ୍ତେ, ମୋକୃଷ୍ଣରେ । ୭ ।
ହଂସତୂଳ ଫୁଲ ଶେଜରେ
ଉଆସ ଖଟ ପଲଙ୍କ ଉପରେ ରେ
ନିଦ କଲୁଟି ତୋତେ ସୁଖରେ, ମୋକୃଷ୍ଣରେ । ୮ ।
ଏବେ କେଉଁ ଘୋର ବନେ
ତାହିଁ ନିଦ୍ରା ଗଲୁ କେଉଁ ଅସନେ ରେ
ତାଲ କଥା କ ନପଡ଼େ ମନେ, ମୋକୃଷ୍ଣରେ । ୯ ।
କେଉଁ ଅଣି ଦେଲ୍ଲ ରସ
ବନ ଫଳମୂଳ କଲୁ ତୁ ଗ୍ରାସ ରେ
ଅଜ ମଳଦେଲ କ ସନ୍ତୋଷ, ମୋକୃଷ୍ଣରେ । ୧୦ ।
ରଙ୍ଗିମା ଅଧରେ ହାସ
ନ ଥିବ, ବାଛ ଛାୟାକାନ୍ତିହ୍ରାସ ରେ
ବାପ ପାଇଥିବୁ କେତେ କ୍ଳେଶ, ମୋକୃଷ୍ଣରେ । ୧୧ ।
ଅଙ୍ଗ କହୁଥିବ ଝାଳ
ଏ ଗ୍ରୀଷମ କାଳେ ଖର ପ୍ରବଳ ରେ

ବନେ କାହିଁ ମେଳିବ ବା ଜଳ, ମୋକୃଷ୍ଣରେ । ୧୨ ।
ଯୋଗୀ ଛାଇଁ ଛାଡ଼ିବ
ନେଲୁ ନାହିଁ ଗଲୁ ବ୍ୟାସଙ୍କର ରେ
ପାଦେ ମୋ ଜଳକୁ କେଉଁ ପ୍ରକାର, ମୋକୃଷ୍ଣରେ । ୧୩ ।
ଚୋ ମାଧୁରୀ ରୂପ ଦେଖି
ଏ ଜୀବନେ ମଣୁ ଥାଇ ମୁ ସୁଖି ରେ
ଥଲ୍ଲ ଖୋଲ ନେଲୁ ମୋର ଆଖି, ମୋକୃଷ୍ଣରେ । ୧୪ ।
ନିଭଙ୍ଗିମା ନଟ ଖେଳ
ଗୁଞ୍ଜ ବେଣୀ ଜୁଡ଼ା ଦେ ।ବାଙ୍କ ଚୂଳ ରେ
ବାପ ଥିବ୍ବ ଢ ଢଳ ଢଳ, ମୋକୃଷ୍ଣରେ । ୧୫ ।
ଗାଲେ ଗୋରଚନା ସୋହେ
ଚନ୍ଦନ ଘାଣ୍ଟି ମନ ବଶ ହୋଏ ରେ
ଏହା ଭାବୁଥିଲୁ ଢ ହୃଦରେ, ମୋକୃଷ୍ଣରେ । ୧୬ ।
କେଉଁ କାନନକୁ ଗଲୁ
କଷ୍ଟ ମୋତେ ପଦେ କହିନ ଗଲୁ ରେ
ବନାଗ୍ନିରେ ଏ ପିଣ୍ଡ ଦହିଲୁ, ମୋକୃଷ୍ଣରେ । ୧୭ ।
କେ ଦେବ ମୋତେ ଦେଖାଇ
ଏହିକ୍ଷଣି ମୁଁ ତ ଯାଉଥିଲି ଧାଇଁ ରେ
ଜିଭ ଦାଉଥିଲା ମୁଖରେ ନେଇ, ମୋକୃଷ୍ଣରେ । ୧୮ ।
ନେଲୁ ନାଶି ବନ୍ଧୁ ଅଛ
ଛନ ଛନ ମନ ଥୟ ନୋହୁଛ ରେ
ଦେହ ଅସ୍ଥିର ପ୍ରାଏ ଲାଗୁଛ, ମୋକୃଷ୍ଣରେ । ୧୯ ।
ତୋପର ଥିବୁଁ ସ୍ନେହ
ଏ ବ୍ରଜ ପୁରରେ ଦେଖାଅ କାହିଁ ରେ
ମୋର କର୍ମକୁ ମିଳଛୁ ଭୁଲ, ମୋକୃଷ୍ଣରେ । ୨୦ ।

ଜୟ ମହାମାଈ ମାତ
ମୋରେ ଅନୁଗ୍ରହ କର ବନ୍ଧୁ ହେ ଗୋ
ଶୁଣେ ଅଧମୋ ଅଜ୍ଞାନ ସୁତ, ହେମାତ ଗୋ
ବନ୍ଦେ ମହାଦେବ ଦୀନ
ସେହନା ଚରଣେ କରଣ ଧ୍ୟାନ ହେ
ସେହୁ ନାମଗୁଣ ଯାଉ ହେନ, ସୁଜନହେ

———(॥୦॥)———

ଭଜରେ ମନ ରଙ୍ଗା ଚରଣ ପାପ ହେବ ଦହନ
ଚିନ୍ତରେ ମନ ଛହାଚରଣ ଜୀବ ହେବ ତାରଣ
ଭଜ ମନ ଗୋବିନ୍ଦ
ମକୁନ୍ଦ ମାଧବ ଅଦିକନ୍ଦ ।
ସେହୁ ଯାଦେ ଅଛୁ ମକରନ୍ଦ ।
ଛାଡ଼ି ଯିବ ପାପ ତାପବନ୍ଦ ।

———(॥)୦(॥)———

ହରନାମ ନଉଚ୍ଚିଲେ ଚରବ ମୁଁ କପଶ
ଲୁଷ୍ଣଙ୍କରେ ପଡ଼ି କାଟି ନେଲ ହବାଶ୍ଵଙ୍ଗ ।
ଦଶଯ୍ଯା ବଷମ ଜାଲେ ପଡ଼ି ଜ୍ଞାନ ହାରିଲ
ଗୁରୁଙ୍କର ପାଦବେନ ସେବା ହନେ ନକଲ ।
ବ ଧରଏ ଭବାର୍ଣ୍ଣବରୁ ତରିବାକୁ ଖୋଜୁଛି ।
ଦୟାକର ଦୀନବନ୍ଧୁ ଶରଣ ମୁଁ ପଶିଛି ।
ନଜାଣଇ ସ୍ତବସ୍ତୁତି ଧ୍ୟାନ କିବା ମନ୍ତ୍ର ।
ପଢ଼ିନାହିଁ ବେଦଶାସ୍ତ୍ର ଅଜ୍ଞାନ ମୋ ଶରୀର ।
ମୋରେ ଅନୁକମ୍ପା କରି ଏ ଜୀବକୁ ଉଦ୍ଧାର ।
ଦୀନହୀନ ଡ଼ାକ ଶୁଣ ମହାଦେବ ଜୁହାର ।

———(୦)———

ଏକଦିନେ ଶବରଣୀ ନାନା କୋଳ ବନୁ ଆଣି
ବୃକ୍ଷମୂଳେ ବସିଥିଲା ନଅ କୋଳ କଣିରେ ॥
କୋଳ ଭୋଳ ବୋଲ ବାଣୀ ଶୁଣିଲେ ମୁରଲୀପାଣି
ଧାଇଁ ଆସିଲେ ଧର ଜନେ ସେହି ଘଡ଼ିରେ । ୧ ।
ଶବରୀ ଅନାଇଥିଲା କଳାକହ୍ନାଇ ଦେଖିଲା
ମନେ ବିଚାରଇ ଏ ଇନ୍ଦ୍ରନୀଳମଣି ହେ । ୨ ।
କିଅବା ନବୀନଘନ କିଅବା ଦଳିତ ଅଞ୍ଜନ
ଅଦ୍ଭୁତ ଲାବଣ୍ୟ ତନୁ ତ୍ରିଭଙ୍ଗୀ ଠାଣିହେ । ୩ ।
କି ସୁନ୍ଦର ପଦ୍ମମୁଖ ଶ୍ରୀଗୁରୁ ଗୋଣି ବିଶେଷ
ଗଲେ ଗୋରଚନା ବିନ୍ଦୁ ପୃଷ୍ଠେ ଲମ୍ବେ ବେଣୀହେ ॥
ଝଲ୍କେ କଙ୍କଣ ଶୋଭେ ରୂପେ ଜଗଜ୍ଜନମୋହେ
କି ସୁନ୍ଦର ଦିଶୁଅଛି କଟୀରେ କିଙ୍କିଣି ହେ । ୪ ।
ପଦ୍ମରେ ନୂପୁର ମାଝେ ଗମନ ମଧୁର ବାଜେ
ଚଳିତ ହୁଅନ୍ତି ଦେଖି ବରଜ ତରୁଣିହେ । ୬ ।
ଶବରୀ ମାତାରେ ଧାନ ଦେଲେ ପ୍ରଭୁ ଭଗବାନ
ମହାନନ୍ଦ ହୋଇଲା ଜାଣି ଶବରଣୀହେ । ୭ ।
ବାଛି ବାଛି ସ୍ୱାଦୁ କୋଳ ଦେଲାକ ଶବରୀ ବାଳୀ
କଳାକହ୍ନାଇ ଅଞ୍ଜୋଳ ନପୁରିଲା ପୁଣିହେ । ୮ ।
ହସି ଶବରୀକି କହୁଁ ବନ୍ଧୁସନ୍ତି ଭାବଗ୍ରାହୀ
ଅଉ କେତେ କୋଳ ଅଛି ଦେଖା ଶବରଣୀହେ ।୯।
ଶବରୀ ହେଲା ଆନନ୍ଦ ଜାଣିଲା ଏଡ଼େ ଗୋବିନ୍ଦ
ଅଞ୍ଜୋଳ ପୂରାଇ କୋଳ କାହୁଁ ଦେବ ଆଣିହେ ॥
ମୋ ଜନ୍ମ ସଫଳ ହେଲା ବୋଲି ମନେ ବିଚାରିଲା
ମହାଦେବ ବୋଲେ ପାଦେ ସାଷ୍ଟାଙ୍ଗେ ପଡ଼ିଲା ହେ ॥

—•(୦)•—

ନନ୍ଦରାଜାଙ୍କର ପୁତ୍ର    କଳା ଢଣ୍ଠାଳ ଗୋ ମିତ
ଛାର ଦାଉ ବ୍ରଜପୁରେ କେ ସହି ପାରେତ ଗେ
ଢେଅବା କାହିଁ ଯିବ    ଘର ଏକା ଜଗିଥିବ
ଦଧି ଛଡ଼ଗଲେ ଦଣ୍ଡେ ଗୃହେ ପ୍ରବେଶିବ ଗୋ ।୨।
ଅଚିନ୍ତା ବେଳକୁ ଫେରୁ    ଗୋପେ ପଡ଼ିଯାଏ ହୁରି
ଲୁଚିଯାଏ ଗମ୍ଭୀରରେ ଗୃହେଁ ଧିର କରୁ । [illegible] ।
କାହିଁ କାହିଁ ଗଲାବୋଲି    ବୋଇଲା ବେଳକୁ ଶୁଣି
ଚ ଛଟକେ ପଳାଇଲା ଧର ନପାରନ୍ତି ଗୋ । ୪ ।
ପୁଚ୍ଛ ଗୋରୁଙ୍କ ଦେଖିଲା    ଛୁଟାଇ ବସାଇଦେଲା
କରେ କୁଞ୍ଜ କାଟ ଘଟେ ଯେତେ ପଳାଇଲୁ ଗୋ ।୫।
ଏପରି ଦୁର୍ଦ୍ଦିଶ୍ୱ ସ୍ନେହ    ଭାବଥା କେ ଜାଣିନାହିଁ
ଦ୍ୱିଜ ମହାଦେବ ବୋଲେ ସେ ଜଗତ ସାଇଁ ଗୋ

—o0o—

ଏକ ଗୋପୀ ବୋଲେ ଶୁଣ    ଅସି ଯଶୋଦା ନନ୍ଦନ
ଦଧିଦୁଗ୍ଧ ଛେନା ଘୃତ ସବୁ କଲା ପାନ ଗୋ । ୧ ।
ଧରନ୍ତେ ବୋଲଇ ମୁହିଁ    ଗଲା ବେଳକୁ ମାଧୋଇ
ବାଟ ବାଟେ ପଳାଇଲୁ ମୁର୍ଦ୍ଧିହଂସା ଦେଇ ଗୋ
ନିତ୍ୟ ଏହିପରି କଲା    କେ ସହିବ ଏଡ଼ା ଭଲା
ବସ୍ତୁବା ଜୀବକା ଶଙ୍କି ଏଡ଼ା ଯୋଗୁ ଗଲା ॥
କପଟ ଏତେ ଭଜିବା    ଜାହାଅଟେ ଯାଇ କହିବା
ମହାଦେବ ପାଇ ବୋଲେ କେମନ୍ତେ ସହିବା ॥

—o0o—

ନନ୍ଦରାଜାଙ୍କର ଛୋକା ପିଲାଟି
ଶ୍ୟେରାଇ ନେଉଛି ଦହି ଗୁଟିଟି
ଛିଣ୍ଡିଥିଲା ଖୀର ନେଲା ସରଟି
ଠାଉଠାଉ ଖାଏ ଦେଖ ପାଟିଟି

ଢଅଙ୍ଗରେ ଗୋବିନ୍ଦ
ମାଧବ ମୁରାରି ମୁକୁନ୍ଦ ।୧।
ବିଶ୍ୱ ପିତାମାତା ଅଦ୍ୱନ୍ଦ୍ୱ ।୨।
ଭକ୍ତିଭରେ ନୃତ୍ୟ ପ୍ରେମାନନ୍ଦ ।୩।
ଫିଟିଯିବ ଭବୁ ମାୟାଫାନ୍ଦ ।୪।
ଛନ୍ଦାଶ୍ରୀଚରଣେ ମକରନ୍ଦ ।୫।
କେବଳ ଥାଉଥାଉ ଭେଲୁବାନ୍ଧ ।୬।

—○—

କୋଳି ଖାଇବାକୁ, ଶ୍ରୀବନମାଳି ।
ପଶନ୍ତି ଅଧିଣ, କରନ୍ତି ଅଳି ।
ଦିଅ ମାଡ ମୋତେ, ଧାଇ ଅଣ୍ଡୋଳି ।
ଆଣିଛୁ ସବରୀ ଭଳକ ଲୁଣ୍ଡି
ଶାଙ୍ଗ ବର ଘୀର ଦୀର୍ଘ କୋଳି
ଧାଇ ଧରି ବାହୁ ଗଳେଲ ରଳ ॥
କୋଳି ଦକ୍ଷା ପାଇ ... ମୋଳି ।
ଦେବ ପାଚୀରେ ସେଥିଲେକ ଲୁଣ୍ଡି ॥
ମାତା ହସ୍ତ ଲୁଣ୍ଡି ପଦ୍ମ ଲୁଛନ୍ତି ।
ବୃଷ୍ଟି ହରେ ଦେନ୍ତୁ ଶବଶ୍ରୀ କୋଳି ।
ଧଇଣ ଭକ୍ତଙ୍କୁ ଶ୍ରୀବନମାଳି ।
ମହାଦେବ ପାଳ କରୁଛି ଅଳି ॥
ଦିଅ ହର ତୁମ୍ଭେ ଶ୍ରୀପାଦ ଧୂଳି ।
ମହାନନ୍ଦେ ଦେଖେ ଦେବସ୍ତ୍ରୀ ଗଳି ॥

—○—

ବନମାଳି ବହ୍ମା ଦେଖି ବନସ୍ତୁରୁ ଗଲେ
କାଦମ୍ବରି ବୃକ୍ଷ ମୂଳେ ଯାଇ ପ୍ରବେଶିଲେ

ନନ୍ଦା ଗଲେ ଜନ୍ଧାଳ । ମୋହନ ବଙ୍କ ମସ୍ତକର ଦେଇ ॥
ଧୀରେ ଧୀରେ ଶ୍ରୀରାଧିକେ ପ୍ରବେଶ ହେଲେ ଯାଇ
ଅନ୍ଧ ପଲ୍ଲ୍ୟଙ୍କେ ବଂଶୀ ଗୋଟି ଅଣିଲେ ଉଠାଇ
ପଣନ୍ତୁରେ ଲୁଚାଇ । ଭାବନ୍ତ ମନରେ ଯିବ ପଳାଇ ।୨।
ଏଥିମଧ୍ୟେ ନନ୍ଦା ଭାଙ୍ଗ ଗଲା ଶ୍ରୀକୃଷ୍ଣଙ୍କର
ଖୋଜି ବୋଲନ୍ତ ମୋ ବଂଶୀ କିଏ ନେଲା ଚୋର
ଶୁଣି ହସନ୍ତି ରାଧିକାଙ୍କ ଏ ଘଟଣା ଦେଖି ହେଲେ ଚାହିଁକା ॥
ଶ୍ରୀମଧାଧବ ଶୁଣି ଶ୍ରୀପତି ବୋଲନ୍ତି ବଚନ
ବଂଶୀ ଗୋଟି ହୃଥ ରାଧେ ଯିବ ମୁଁ ଏକ୍ଷଣ
ବୟସ୍ୟା ବାଳକ କାହିଁ । କେଉଁ ସ୍ଥଳେ ଗଲେ ଲୁଚିଛବଇଁ ॥
ତୁମ୍ଭ ଉର ପାଖେ ରଖିଥିଲ ମୋର ବଂଶୀ
ଯେଉଁ ଗ୍ରାହକ ଥ ବେଗେ ଚଳେ ପଡ଼ି ଖସି
ଜଣା ପଡ଼ୁ ନଥିଲି । ମିଛ କହ ନାହିଁ ମନେ ରାଧା ରାଣୀ ।
ରାଧିକା ବୋଲନ୍ତି ବଂଶୀ ମୁଁ ତ ନେଇନାହିଁ ।
ମିଛେ ମୋତେ ଦୂଷଣ ଦେଉଛ ତ ପାଇଁ
ହଠା ମୋର ନିଆଇଲେ । ବାହାଇଲ ଥିଲ ସବୁ ବେଳେ ॥
ମାୟାଧର ମାୟା କଲେ ବଂଶୀ ପଡ଼େ ଖସି
ଆଶ୍ଚର୍ଯ୍ୟ ହୋଇଣ ରାଧା ମୌନେ ଗଲେ ବସି
ମହାଦେବ କହଇ । ବନେ ଗଲେ କୃଷ୍ଣ ବୟସ୍ୟା ନେଇ ॥

---

ଶୁଣଥରେ ଗୋପ ଧନ, ନନ୍ଦା ବତ୍ସା ନେଇମନ
ଚୋରେ ତ ଅପୂର୍ବ ବାପ ଉଦରୁ ଜନମିଣ ରେ
ଭଣ୍ଡାରରେ ଅଛି ଧନ, ବାଛି ବାଛି ନେଇ ଯେନ
ନାନା ରତନ ଶ୍ରୀଅଙ୍ଗେ ଭୂଷ ଆଭରଣ । ୨ ।
ଭୁ ବୟସ୍ୟା ଯିବୁ କାନନ, ଗୋପାଳ ବାଳ ସଙ୍ଗେଣ

ଲକ୍ଷେ ରଖିଥିଲ ମୋର ଅଛନ୍ତି ବନ୍ଧଣ ରେ । ୩ ।
ଭୁବନରଞ୍ଜନ ଶ୍ୟାମ ଶୁଣର ଅଛନ୍ତି ରହୁ
ବ୍ରଜ ନନ୍ଦନ ବନ୍ଧ୍ୟା ଯିବୁ ବସ୍ତା ନେଇ ରେ । ୪ ।
ଘୋର ବନେ ନାନାଦୁଃଖ, ଦଣ୍ଡେ ମାତ୍ର ନାହିଁ ସୁଖ
ଖରା ବରଷାରେ ସୁଖି ଯିବ ଚନ୍ଦ୍ର ମୁଖ ରେ । ୫ ।
ବ୍ୟାଘ୍ର ଭାଲୁ ଭୟଙ୍କର, ଜନ୍ତୁ ଅଛନ୍ତି ଅପାର
ତାଙ୍କ ରବ କର୍ଣ୍ଣେ ଶୁଣି ହେବୁ ଚମକ୍ରାଇ ରେ । ୬ ।
ଚନ୍ଦ୍ରଲେଖା ବାଡ଼େ ଦେଖି, ଡର ମୋ କୋଳଭୁଥିପେ
ମା'ମା ଭୟ ଲାଗେ ବୋଲି ବୁଝଦେଉ ଅଛି ରେ । ୭ ।
ହଂସୁଲ ତୂଳରେ ସନ୍ତେ, ନିଦ ନ ଲାଗଇ ତୋତେ
ଲୋଡ଼ିଲେ ସେ ଶଯ୍ୟା ଅଉ ନମିଳେ ବନସ୍ତେ ରେ । ୮ ।
ତୃଷା ହେଲେ ଜଳ ଚାହିଁ, ଖୋଜିଲେ ମିଳଇ ନାହିଁ
କ୍ଷୁଧା ହେଲେ ବନଫଳ ଖାଇବୁତ ତୁହି ସେ । ୯ ।
ତୋତେ ନ ଦେଖିଲେ ଦଣ୍ଡେ, ମୋ ପ୍ରାଣ ନରହେ ପିଣ୍ଡେ
ତୋପରି ଅବୁଝା ବାଳ କେ ଅଛି ବ୍ରହ୍ମାଣ୍ଡେ ରେ ।୧୦।
ବସ୍ତା ରଖୁ ନଯା ତୁହି, ସେ ପଣ ମୋ ଲୋଡ଼ା ନାହିଁ
ଭାବେ ମହାଦେବ ପାଳ କୃଷ୍ଣନାମ ଧାଇଦେ । ୧୧ ।

——(୦)——

ମାତା ଅସେ କୃଷ୍ଣଚନ୍ଦ୍ର କହନ୍ତି ଏମନ ।
ଜନ ବନ୍ଧ୍ୟା କରିବାକୁ ଏବା ବଡ ପଣ ହେ । ୧ ।
ତୁମ୍ଭେ ବୋଲୁଅଛ ଅମ୍ଭେ ଗୋପର ରାଜନ ।
ବନ୍ଧ୍ୟାବସ୍ତା ତସ୍କରବ, ଏକଇ ନନ୍ଦନ ହେ । ୨ ।
ନରହୁବ ସବୁଦନେ ଧନ ହେତ ପଣ ।
ନିଜବୃତ୍ତି ନ ଶିଖିଲେ ହୁଏ ଅକାରଣ । ୩ ।
ଗରୁଡ଼ ଗାବଳା ବୃତ୍ତି ପ୍ରଧାନ ଆମ୍ଭର ।

ଉଚିତ ହେଉଥିବ ଧେନୁ ବତ୍ସା ରଖିବାର ହେ । ୪ ।
ମୋହଠାରୁ ସାନ ସାନ ବାଳକ ଅଛନ୍ତି ।
ବତ୍ସା ଚରା ବୁଦ୍ଧିବନ୍ତା ସେ ସବୁ ଜାଣନ୍ତି ହେ । ୫ ।
ଆଜଯାଏ ଗୋପାଳଙ୍କୁ ଦେଖି ନାହିଁ ମୁହିଁ ।
ଅଚହ୍ନା ଲୋକେ ଦେଖିଲେ ଗୋଡାଅନ୍ତି ଗାଈ ହେ । ୬ ।
ବେଦନ ଲୁଣ ଭସ୍ମ ପାଇ ଅଛୁ ଯେ ଘରକୁ ।
ନିଜ ବିଦ୍ୟା ନ ଶିଖିଲେ ଆସେ କି କାର୍ଯ୍ୟକୁ । ୭ ।
ମାତା ପିତା ଥାଉ ଥାଉ ପୁତ୍ର ମୂର୍ଖ ହେଲେ ।
ପୁଣି କି ଲଭିବ: ଜୀବନରେ ବେଢେ ବେଳେ । ୮ ।
ତୁମ୍ଭଲାଗି ଅମ୍ଭେ ନଷ୍ଟେ ଅଯୋଗ୍ୟ ହୋଇଲୁ ।
କାହିଁ ଗୋପପୁର ତାହିଁ ମଥୁରା ଉହିରୁ । ୮ ।
ତାହିଁ ଗଲେ ଅମ୍ଭଙ୍କୁ ଯେ ନମିଳିବ ବାସ ।
ଅନ୍ୟ ବୃତ୍ତି କରିବାକୁ ହେବ ବଡ଼କ୍ଲେଶ ହେ । ୯ ।
ମହାଦେବ ବୋଲେ ମାତ ତୁମ୍ଭର ନନ୍ଦନ ।
ସକଳ ପ୍ରାଣୀଙ୍କ ପ୍ରାଣ ସ୍ୱୟଂ ନାରାୟଣ ହେ । ୧୦ ।

——(୦)——

ଶୁଣ ପଞ୍ଚ ଜନମାନେ ଦେଇ ମନ ବନ୍ଧି ।
ଶ୍ରୀକୃଷ୍ଣଙ୍କ ନାମାମୃତ ସର୍ବେ କର ପାନ ।
ଦିନେ ସର୍ବ ଗୋପିମାନେ ମିଳି ଏକ ସ୍ଥାନେ ।
ନନ୍ଦ ରାଜା ପୁତ୍ର କାହ୍ନୁ କଥା ଭାଳି ମନେ ହେ ।
ହଟିଆ କଲା କହାଇ ମନେ ମନେ ବଳି ।
ନିତି ଅମ୍ଭ ଭୁବନରେ କରୁଛନ୍ତି ଅର୍ଦ୍ଦଳ ହେ ।
ଦଧି ଖାଇଦେଇ ସବୁ ଭାଣ୍ଡ ଭାଙ୍ଗି ଦିଏ ।
କ୍ଷୀର ପିଇ ଦେଇ ଲୋଟେ ସିକାକୁ ଛିଣ୍ଡାଏ ହେ ।
ନାନା ରଙ୍ଗେ ନୃତ୍ୟ କରେ ବଂଶୀ କି ବଜାଇ ।

ମୋ କଥା ମାନ ବହିବା କାହ୍ନା ଅଗେ ଯାଉ ହେ ।
ଦଧି କ୍ଷୀର ମାଖନ ସବୁ ଖାଇ ହେଉ ବଳ ।
ଦେଖା ଦେଲେ କୃଷ୍ଣ କୃଷ୍ଣ ପଲ୍ଲବେ ଯେ ଧୀରେ ହେ ।
ବାଳକ ଗୋଟି କରୁ ଦେଖି ହେଉଛନ୍ତି ଖୋଳ ।
ନନ୍ଦ ରାଜାଙ୍କୁ କହିବା ଯିବା ସବେ ଥାଅ ହେ ।
ଯଶୋଦା ସୁଶୀଳେ ଅମ୍ଭେ ଦେଖିବା ସେ ଦୋଷୀ ।
କହୁଛି ନନ୍ଦଘୋଷୀ ବୋଲି କହୁଛ ଯେ ଏସେ ହେ
ଅମୃତ ଉପାନନ୍ଦ ଏଥି କହି ଲହି ଥାଅ ।
ଜୀବନ ପୋଷିବେ କୃଷ୍ଣ କାହୁ ଯିବି ଗଲ ହେ ।
ସେ କାଳ କହାନ୍ତି ନାମ ସଂସାରେ ସାର ।
ମହାଦେବ ବୋଲନ୍ତି ସର୍ବେ ଶ୍ରଦ୍ଧା ଭକ୍ତି ଦେ ହେ ।

—— (୩) ——

ଏକ ଦିନେ ନନ୍ଦବାଳ ଗୋପଙ୍କ ଅଗ୍ରେ ।
ନାଚୁଛନ୍ତି ହୋଇଛି ପ୍ରେମ ଛନ୍ଦାଭରେ ।
ଏହି କାଳେ ନନ୍ଦଘୋଷୀ ଅଧି ପ୍ରବେଶିଲେ ।
ଗୋପିଙ୍କି ଅନାଇ ଦେଖେ ଏମନ୍ତ ବୋଇଲେ ହେ ।
ଏକ କର୍ମ କରୁ ଅଛ ଅଗୋ ଗୋପବାଳି ।
ଦେଖେ ପରଶି ନେଲୁ ସୁଖେ ବାଳମାଳୁ ଓଗୋ ।
ଛବା ନ ଦଇବ ଦିଏଛନ୍ତି ମୋ ବାଛରେ ।
ନ ଜାଣ ନେଇ ଗୁରୁକ ବୋଲନ୍ତି ଅମାରେ ହେ ।
ନାଚିବେ ନାଚବେ କୃଷ୍ଣ ହୋଇଲେ ଅସ୍ଥିର ।
ନୀଳମଣି ଅଙ୍ଗ ବହେ ଦେଖନ୍ତି ସ୍ୱେଦ ନୀର ହେ ।
ଯଶୋଦାଙ୍କ ବାଣୀ ଶୁଣି ବୋଇଲେ ଗୋପୀଗଣ ।
ଅଗେ ନନ୍ଦରାଣୀ ଗାଳି ଦିଅ ନ କାରଣ ଗୋ ।
ଏହି କାହ୍ନୁ ଅମୃତ ଗୋ ଜୀବର ଜୀବନ ।

ଭଜରେ ସୁମନ ଗୋବିନ୍ଦ ଚରଣ
ଭବାର୍ଣ୍ଣବୁ ତେବେ ପାରିବେ ।

ଏ ମାୟା ସଂସାର — କେବା କେ କାହାର
ମନେ ଗର୍ବ ବହୁ — ବୋଲୁଅଛୁ ମୋର
ଦାର ସୋଦର — ଜନନୀ ଜିଅର
ସର୍ବ ମିଥ୍ୟା ମନେ ଭାବରେ । ୧ ।

ଧନ ଯଉବନ — ଏ ଅଟେ ସ୍ୱପନ
ଜୀବନକୁ ଏତ — ନକରେ କାରଣ
ବିଷୟରେ ପଡ଼ି — ଜ୍ଞାନ ଦେଲୁ ଛାଡ଼ି
ତରିବୁ ତୁ କେଉଁ ପ୍ରକାରେ । ୨ ।

ଯେଉଁ ନାମ ଗୋଟି — ବ୍ରହ୍ମା ଶିବ ଧ୍ୟାନେ
ଭଜୁଛନ୍ତି ସଦା — ସର୍ବ ଦେବଗଣେ
ସେହି ନାମ ତୁହି — ଶୟନେ ସ୍ୱପନେ
ଚିନ୍ତ ଭବ ସିନ୍ଧୁ ତରରେ । ୩ ।

ନଭଜିଲେ ନାମ — ବାନ୍ଧି ନେବ ଯମ
ନରହିବ ତୋର — ଗର୍ବ ଠାଣ ଦମ୍ଭ
କେତେ ଦିନ ତୁହି — ଏ ଦେହରେ ରହୁ
ଦିନ କାଟୁଛୁ କହରେ । ୪ ।

ତୋ ମସ୍ତକ ବାଳ — ଧରିଅଛି କାଳ
ନାହିଁ ତା ବିଚାର — ଯାହା ଇଚ୍ଛା ତାର
କରିବ ସେ କଥା — କେ କରେ ଅନ୍ୟଥା
ବେଳ ଥାଉ ବାଳ ବାନ୍ଧରେ । ୫ ।

ଦେଖୁଛୁ ନୟନେ — କେତେ କେତେ ଜନେ
ଛାଡ଼ି ଯାଉଛନ୍ତି — କେ ବସ ନାଅନ୍ତି
ମହାଦେବ ବୋଲେ — ନାମ ଭଜିଥିଲେ
ନଡରିବ ଯମ ଘରରେ । ୬ ।



# ବିଜ୍ଞାପନ

ଶ୍ରୀ ମହାଦେବ ଶୀଳଶର୍ମାଙ୍କ କୃତ ବୃହତ୍ ଚୈତନ୍ୟ ଗୀତ, ନାନା ରାଗ ରାଗିଣୀ ଯୁକ୍ତ ଚତୁର୍ଦ୍ଦଶ ଛନ୍ଦରେ ପୂର୍ଣ୍ଣ । ଚୈତନ୍ୟ ଦେଶର ପ୍ରଚଳିତ ପ୍ରକୃତ ଘଟଣାମାନ, ବଙ୍ଗଦେଶର ଚଳ୍ଟା, ଗୃହକର୍ତ୍ତାଙ୍କ ଚିନ୍ତା ଓ ଭାବନା ପ୍ରେମୀଙ୍କ ଛଦ୍ମ ବ୍ୟବହାର, ବୃଦ୍ଧ ଉତ୍କଳବାସୀଙ୍କ ପ୍ରତିପାଦନଯୋଗ୍ୟଦେଶ ଅର୍ଥାତ୍ ଘରୁ ପିବାଠାରୁ ଘରକୁ ଫେରିବା ପର୍ଯ୍ୟନ୍ତ ସକଳ ବିଷୟ ସରଳ ସୁଲଳିତ ଓ ସ୍ପଷ୍ଟ ଭାବେ ବର୍ଣ୍ଣିତ ହୋଇଅଛି । ୪ ବର୍ଷ ମଧ୍ୟରେ ୯୦୦୦ ଖଣ୍ଡ ପୁସ୍ତକ ସରିଯାଇଛି । ପୂର୍ବାପେକ୍ଷା କଳେବର ବୃଦ୍ଧି ପାଇଲେ ସୁଦ୍ଧା ଗ୍ରାହକମାନଙ୍କ ଆଗ୍ରହ ଦେଖି ପୂର୍ବମୂଲ୍ୟ ରଖାଇଅଛୁ । ଯାହାରେ ଗ୍ରହଣ କଲେ ସର୍ବ ସଫଳ ମନୋକାମନା । ଅତି ସୁଲଭମୂଲ୍ୟ ଟ ୦ ୮/

| | | | |
|---|---|---|---|
| ଚୈତନ୍ୟ ଗୀତସାର | ଟ ୦ ୵ | ଚୈତନ୍ୟ ରହସ୍ୟ | ଟ ୦/ |
| ନୂତନ କୋଇଲିମାଳିକା | ଟ ୦ ୵ | ଭଜଗୋବିନ୍ଦ ଗୀତ | ଟ |
| ଭକ୍ତିଚନ୍ଦ୍ର ସଙ୍କୀର୍ତ୍ତନ | ଟ | ଭକ୍ତଜୀବନ ସଙ୍କୀର୍ତ୍ତନ | ଟ |
| ପ୍ରେମସାଗର ସଙ୍କୀର୍ତ୍ତନ | ଟ | ପ୍ରେମସୁଧା ସଙ୍କୀର୍ତ୍ତନ | ଟ |
| ପ୍ରେମାମୃତ ସଙ୍କୀର୍ତ୍ତନ | ଟ | ନାରୀଉପଦେଶ | ଟ ୯ |
| ଶ୍ରୀକୃଷ୍ଣ ବାଲ୍ୟଲୀଳା | ଟ | ସୁଭଦ୍ର ମାଳା | ଟ ୦ ୵୬ |
| ପଞ୍ଚଭାଷୀ ଶିକ୍ଷା | ଟ ୦ ୵ | ସତୀ-ଲକ୍ଷ୍ମୀ-ନାରୀଧର୍ମ (ଯନ୍ତ୍ରସ୍ଥ) | |

ଏହା ଛଡ଼ା ସକଳ ପ୍ରକାର ଓଡ଼ିଆ ପୁସ୍ତକ ଆମ୍ଭମାନଙ୍କ ଠାରେ ସର୍ବଦା ମହଜୁତ ଅଛି ବିକ୍ରି ନିମନ୍ତେ ।

ହରିହର ପୁସ୍ତକାଳୟ
ନୂଆଗଡ଼
ପୋ.—ଝୋରଡ଼ା